ଡକ୍ଟର ବନମାଳୀ ବାରିକ
ଇଡ଼ିଦା (ବସ୍ତା)
ସଂପର୍କ - ଲକ୍ଷ୍ମୀସାଗର (ଉପର ସାହି), ଭୁବନେଶ୍ୱର -୬
ପ୍ରଥମ ପ୍ରକାଶ - ୨୦୦୭
ପ୍ରକାଶକ - ମୟୂର ପବ୍ଲିକେଶନ୍ସ, ଭୁବନେଶ୍ୱର-୧
ପ୍ରଚ୍ଛଦ - ଅଶ୍ୱିନୀ କୁମାର
ଡ଼ିଟିପି - ଡି-ନେଟ୍
ମୁଦ୍ରଣ - ଡି-ନେଟ୍, ଭୁବନେଶ୍ୱର
ମୂଲ୍ୟ - ୫୦/-

**Dr. Banamali Barik**
IRDA (Basta)
Contact - Laxmisagr (Upper Sahi), BBSR-6
First Edition - 2007
Publisher - Mayur Publications, Bhubaneswar-1
Cover - Aswini Kumar
D.T.P - D-Net
Printer - D-Net, BBSR.
Price -50/-

# ସୂଚୀପତ୍ର :

# ଉତ୍ସର୍ଗ

ପରମ ସମ୍ମାନନୀୟା

୰ ଶ୍ରୀମତୀ ପ୍ରମଦା ସୁନ୍ଦରୀ ନନ୍ଦଙ୍କ

(ନନ୍ଦ ନିବାସ, ସହଦେବଖୁଣ୍ଟା, ବାଲେଶ୍ୱର)

ପବିତ୍ର ସ୍ମୃତିରେ ।

ସେବା ଥିଲା ତୁମ ଜୀବନର ମହାଧରମ
କିଏ ନିଜ ପର ଭିତରେ ନ ଥିଲା ଭରମ ।

ଥିଲ ରଜା ଝିଅ, ସାଜିଲ ରଜାର ଘରଣୀ
ଦୀନ ଦୁଃଖୀ ଲୁହ ପୋଛିବାଟା ଆଜି କାହାଣୀ ।

ତମରି ସ୍ନେହରେ ଭିଜିଛି ମୋହର ଜୀବନ
ଦୀନହୀନ ଜନ କି ଦେଇ ପୂଜିବ ଚରଣ ।

ଲେଖକ

# -ଭୂମିକା-

ସମୟ କାହାପାଇଁ କ'ଣ ରଖିଛି କେହି ଜାଣେନା । ଆମର ଗର୍ବ, ଅହଂକାର ମୁହୂର୍ତ୍ତକରେ କେତେବେଳେ ମାଟିରେ ମିଶିଯାଏ ତ କେତେବେଳେ ଭାଗ୍ୟ ଆମକୁ ଦାଣ୍ଡଧୂଳିରୁ ସାଉଁଟି ଆଣି ସିଂହାସନରେ ବସାଇଦିଏ । କଥାରେ ଅଛି - 'କିସ ପୁଣି ଦେଖା ନଯାଏ ଜିଇଁଥିଲେ ଜୀବରେ' । ଯାତ୍ରା ପଥରେ ଏଭଳି ଅନେକ ଘଟଣା ଦେଖିବାକୁ ମିଳିଛି । କେତେବେଳେ ତାହା ସୁଖକର/ପ୍ରୀତିପ୍ରଦ ତ କେତେବେଳେ ତାହା କ୍ରୁର, ନିଷ୍ଠୁର, ନିର୍ମମ । ଭାବିଲେ ସେସବୁ ଯେତିକି ଦରକାରୀ ସେତିକି ଅଦରକାରୀ । କାରଣ ସେସବୁର ମୂଲ୍ୟ ଅଛି/ନାହିଁ । ଯିଏ କାଲିଥିଲା ଅତି ଆପଣାର, ଆଜି ସେ ମୁହଁ ମୋଡ଼ି ଦେଉଛି । ଭାଇ, ବନ୍ଧୁ, ଜ୍ଞାତି, କୁଟୁମ୍ବ, ଗୁରୁଜନ, ପରିଜନ - କେତେ ଆସିଲେ, ହସିଲେ, ରସିଲେ- ପୁଣି ବାଟଭାଂଗି ଚାଲିଗଲେ । କେତେବେଳେ ପରହୁଏ ଆପଣାର ତ କେତେବେଳେ ଆପଣାର ହୁଏ ପର । ଦୁନିଆର ରୀତି ଏଇଆ ।

କିଏ ଜଣେ ପଣ୍ଡିତ କହିଥିଲେ - ' ଆରେ ବାବୁ ପଢ଼ିଲେ ସବୁ କଥା ଜାଣିବୁ' । ଦିନେ ଲାଇବ୍ରେରୀରୁ ପାଇଲି ରସେଲଙ୍କ 'ମ୍ୟାରେଜ୍ ଆଣ୍ଡ ମୋରାଲସ୍' । ତାପରେ 'ହ୍ୱାଇ ଆଇ ଏମ୍ ନଟ୍ ଏ ଖ୍ରୀଷ୍ଟିଆନ' । ମନଟା ଖୁସି ହୋଇଗଲା । ନୀତି, ଅନୀତି, ପାପପୁଣ୍ୟ, ଠାକୁର ପଥର ଭିତରେ ପାର୍ଥକ୍ୟ ବୁଝିଲି । ଦିନେ ହାତ ପାଆନ୍ତାରେ ପହଞ୍ଚିଲା 'ରେସନାଲିଷ୍ଟ୍ ସୋସାଇଟି ଅଫ୍ ଇଣ୍ଡିଆ'ର ମାସିକ ପତ୍ର । ମେମ୍ବର ହୋଇଗଲି । ପ୍ରାୟ ୮/୧୦ବର୍ଷ ସେଇଥିରେ ମାତିଲି । ବେଶ୍ କିଛି କବିତା ବି ଲେଖିଲି । ଈଶ୍ୱର ନାହାନ୍ତି' ବୋଲି ଜୋରସୋରରେ ଯୁକ୍ତିତର୍କ ଆରମ୍ଭ କରିଦେଲି । 'ସବୁଜ ଶାନ୍ତି' ପତ୍ରିକାରେ କେତୋଟି ଲେଖା ପ୍ରକାଶ ପାଇଲା । କବିତା

ସଂକଳନଟିଏ ମଧ୍ୟ । ସଂସାରର ଅଘଟଣ ସବୁ ଦେଖି ଦେଖି ମନ୍ଦିର ଠାକୁର, ପୂଜା ପାଠ, ହୋମ ଯଜ୍ଞ ପ୍ରତି ଆସ୍ଥାପ୍ରାୟ ତୁଟିଗଲା ।

ଇତି ମଧ୍ୟରେ ବହୁବର୍ଷ ବିତିଗଲାଣି । କବିତା ଗୁଡ଼ିକୁ ଏକତ୍ର ଦେଖିବାକୁ ଇଛା ହେଲା । ତେଣୁ ଏ ସଂକଳନର ପରିକଳ୍ପନା । ମୋର ଶୁଭାକାଂକ୍ଷୀ ଆଚାର୍ଯ୍ୟ ଭାବାନନ୍ଦଙ୍କୁ ପ୍ରସ୍ତାବ ଦେଲି । ସେ ସମ୍ମତି ଦେଲେ । ଏ ଅବସରରେ ବିଭିନ୍ନ ପତ୍ର ପତ୍ରିକା ଯଥା - କଳିଙ୍ଗପ୍ରଭା (ରାଉରକେଲା) ସବୁଜଶାନ୍ତି (ଭୁବନେଶ୍ୱର) ଏବଂ କବିତା (ଦିଗ ପହଣ୍ଡି) ପୃଥିବୀ (ଗୁଆମାଳ) ପତ୍ରେ ପତ୍ରିକା (ଖଡ଼ିଆଳ) ଏବଂ କେତୋଟି ସ୍ମରଣିକା ଓ ବାର୍ଷିକ ସଂଖ୍ୟାର ସଂପାଦକମାନଙ୍କୁ ଶ୍ରଦ୍ଧା ଓ କୃତଜ୍ଞତା ଜଣାଉଛି ।

ଏତଦ୍‌ବ୍ୟତୀତ ମୋର କବିତା ସବୁରେ ଅନ୍ତରଙ୍ଗ ପାଠକ ମୋର ପୂଜ୍ୟ ସାର୍ ଡ଼କ୍ଟର ଗଗନେନ୍ଦ୍ର ନାଥ ଦାଶ, ଅପା ଗାଳ୍ପିକା ଶ୍ରୀମତୀ ରମା ଦାଶ, ବଂଧୁ ଅଧ୍ୟାପକ କୈଳାସ ଚନ୍ଦ୍ର ଦାଶ (ଇତିହାସ) ସଂସ୍କାରବାଦୀ ବଂଧୁ ଅଧ୍ୟାପକ ବି. ରାମଚନ୍ଦ୍ର, କବି ଓ ଗାଳ୍ପିକ ବଂଧୁ ଅଧ୍ୟାପକ ବିଶ୍ୱ ରଂଜନ, ଭାଉଜ ଲେଖିକା ରାଜଲକ୍ଷ୍ମୀ ମହାନ୍ତି, ପଛୁଆବର୍ଗର ନେତା ହେମନ୍ତ କୁମାର, ନାଟ୍ୟପ୍ରେମୀ ଶ୍ରୀଯୁକ୍ତ ଦେବେନ୍ଦ୍ର କୁମାର ରାଉତ (ଅଣ୍ଡର ସେକ୍ରେଟାରୀ), ବଂଧୁ ଅଧ୍ୟାପକ ବିବେକାନନ୍ଦ ପାଣିଗ୍ରାହୀ, ବଂଧୁ ଅଧ୍ୟାପକ ବିମଳ କିଙ୍କର ମହାନ୍ତି ଓ ଶ୍ରୀଯୁକ୍ତ ପର୍ଶୁରାମ ବାରିକଙ୍କ ନିକଟରେ ମୁଁ କୃତଜ୍ଞ । ପରି ଶେଷରେ ପ୍ରକାଶନ ନିମିତ୍ତ ଅକ୍ଲାନ୍ତ ଉଦ୍ୟମ କରିଥିବା ଡ଼ି.ନେଟ୍‌ର କର୍ମକର୍ତ୍ତାବୃନ୍ଦ ଏବଂ ମୟୂର ପ୍ରକାଶନକୁ ସବିଶେଷ କୃତଜ୍ଞତା ଜଣାଉଛି ।

ବିନୀତ

ଲେଖକ

# ନାଆଁ ତାର କଳାହାଣ୍ଡି

ନାଆଁ ତାର କଳାହାଣ୍ଡି
ହାଣ୍ଡି ତାର ପଡ଼େନାହିଁ କଳା,
ଅନାଥ ସନ୍ତାନ ପରି
ଦେହ ମୁଣ୍ଡ ନୁଖୁରା ମଇଳା ।
ଆହା ଆହା କହି,
କାନ୍ଦନ୍ତି ସର୍ଭିଁଏ କିନ୍ତୁ
କା ଆଖିରୁ ଲୁହ ଝରେ ନାହିଁ ।।
ଭୋକର ଅଦୃଶ୍ୟ ନିଆଁ
ମାଡ଼ିଯାଏ ଗାଁ ପରେ ଗାଁ,
ସାହୁକାର ଫନ୍ଦାପରି
ମେଲିଅଛି ଶାଗୁଣାର ଆଁ ।
ଗିଳିଦେବା ପାଇଁ,
ଅଭୟ ମୁଦ୍ରାରେ ଡ଼ାକେ
ଆ... ଆ... ଆରେ ବାଟୋଇ ।।
ନେତାଙ୍କର ପ୍ରବୋଧନା
ମନ୍ତ୍ରୀଙ୍କର ମଧୁର ଭାଷଣ,
ସରକାରୀ ଦପ୍ତରର
ଚାଟୁଲିପି ଗୁପ୍ତ ବିବରଣ ।

ଥାକ ଥାକ ହୋଇ,
ରେକର୍ଡ଼ ରୁମ୍‌ରେ ରହେ
ପ୍ରଗତିର ଇତିହାସ ପାଇଁ ।।
ନିରସ ଭାଗ୍ୟରେ ତୋର
ସୂର୍ଯୋଦୟ ଫୁଟାଇବା ପାଇଁ,
କେତେଯୁଗ ଅପେକ୍ଷାରେ
ଯାଇପାରେ ଏକାନ୍ତରେ ବହି ।
ତା ହିସାବ କାହିଁ,
ଆମେ ସବୁ କଂସ କୁଳ
ସ୍ୱାର୍ଥଛଡ଼ା କିଛି ଜାଣୁନାହିଁ ।।
କାନ୍ଦୁଥା ଲୋ ଅଭାଗିନୀ
କାନ୍ଦୁଥାଲୋ ଅଂଧାରେ ଅବଳା,
ଅଷ୍ଟମ ଗର୍ଭରେ ତୋର
ଜନ୍ମକେବେ କେଉଁ ଷୋଳକଳା ।
ସେଇଦିନ ତୋର,
ପ୍ରଭାତର କାକଳିରେ
ମୁଖରିତ ହେବ ଶୂନ୍ୟପୁର ।

****

*'କଳିଙ୍ଗ ସୌରଭ'-୮୬, (ରାଉରକେଲା)ରେ ପ୍ରକାଶିତ*

# କାଳରାତ୍ରୀ : ବୁର୍ଲା

ହେ ମୋର ଦେଶର ସ୍ୱପ୍ନ ବିଭୋର
ତରୁଣ ଛାତ୍ର ଦଳ,
ନୂଆ ଭାରତର କର୍ମକୁଶଳ
ନୂଆ କାରିଗର କୁଳ ।
ସବୁ ତମ ଅଭିମାନ,
ପଶୁ ଶକ୍ତିର ଅହମିକା ଆଗେ
ହୋଇଗଲା କୁର୍ବାନ ।।
କେତେ ପିତାମାତା ଅଶ୍ରୁ ଜଳରେ
ମହାନଦୀ ହେଲା ଲୁଣି ।
କେତେ ଭାଇ କେତେ ଭଉଣୀ ଛାତିରେ
ବର୍ଚ୍ଛା ପଡ଼ିଲା ପୁଣି ।
ପ୍ରିୟତମାର କୋହ,
ଏସବୁ ବୁଝେକି ପୁଲିସର ଲାଠି
କଳାଟଙ୍କାର ମୋହ ।।
ସାରା ଓଡ଼ିଶାର ଗଗନେ ପବନେ
ହାହାକାର ଗଲା ଛାଇ,
ବୁର୍ଲାର ମାଟି ସୁଭଦ୍ରା ଭଳି
କାନ୍ଦିଲା କଇଁ କଇଁ ।

ଇତିହାସ-ନୁହେଁ ଗପ,
ଥରଟେ ଦଶଟି ଅଭିମନ୍ୟୁର
ଲିଭିଲା ଜୀବନ ଦୀପ ।।
ଗୋଟିଏ ରାତିରେ ଭୁଷୁଡ଼ି ପଡ଼ିଲା
କୋଟିଏ ଆଶାର ତାଜ,
ଧନ୍ୟ ଆମର ଧନର ଦିମାକ
ଧନ୍ୟ ଗଣର ରାଜ ।
କେହି ନାହିଁ କାର ସାହା,
କୁହୁଡ଼ି ଭିତରେ ଅଣ୍ଡାଳି ବାଟ
ଚାଲିବାଟା ସାର ଯାହା ।।

****

# ଯେଉଁଠି ଦେବତା

ଯେଉଁଠି ଦେବତା ସେଇଠି ଶଠତା
ଯେତେ ଅନୀତିର ମେଳା,
ଧର୍ମ ନାମରେ ଯେତିକି ଫିସାଦି
ଯେତେ ବିଷାକ୍ତ କଳା ।
ଜାଣନି କି ଭାଇ ଜାଣନି କି -
ନିଜଗାଁ ଠାରୁ ଓରଗାଁ ଯାଗେ
ଦୁନିଆର ହାଲ ଦେଖୁନ କି ? ।୧।
ଜଗନ୍ନାଥର ମନ୍ଦିରେ ଦେଖ
ପଶୁ ହତ୍ୟାର ଲୀଳା,
ଲକ୍ଷ୍ମୀଙ୍କ ଠାରୁ ମୁକୁଟ ଚୋରୀ ତ
(କେଉଁଠି) ମୂର୍ତ୍ତି ହେଲାଣି ଖୋଳା ।
ପଣ୍ଡାଙ୍କ ଦାଉ ଶୁଣିନ କି -
ଆଠଣା ଟଙ୍କେ ନଦେଲେ ତମର
ମହତ ଦିକଡ଼ା ହେଉନି କି ? ।୨।
ରଣପୁର ଦେବୀ ମଣିଷରକ୍ତେ
ଘେନୁଛି କିପରି ଚିତା,
କେଉଁ ଦେବୀ ମାଗେ ମେଣ୍ଢା ମଇଁଷି
କିଏ ମାଗେ ସୁନା ଛତା ।
ତାନ୍ତ୍ରିକ ଖେଳ ଦେଖୁନ କି -
ଝିଅ ବୋହୂଙ୍କର ସତୀପଣ ଘେନି
କେତେ ଅପବାଦ ରଟୁନି କି ? ।୩।

ମୂର୍ଖ ଭଗତ କରୁଅଛି ଦାନ
କେତେ ହୀରା ନୀଳା ମୋତି,
ମହା ଅୟସରେ ଭୋଗ କରେ କିଏ
ପିଇ ଘିଅ ମହୁ ନିତି ।
ବାବାଜିଆଙ୍କୁ ଚିହ୍ନିନ କି -
ଜଟା କଉପୀନ ଭିତରେ ଭିତରେ
କେତେ ରାସଲୀଳା ଚାଲୁନି କି ? ।୪।
ଦେବାଦେବୀ ନାମେ କେତେ ଚୋରୀ ନାରୀ
କାହାରି କି ନାହିଁ ଭୟ,
କେଉଁଠି ଗଂଜା କେଉଁଠି ଭାଂଗ
କେଉଁଠି ମଦର ସୁଅ ।
ଭକ୍ତ ତାଲିକା ପଢ଼ିନ କି -
ଯେତିକି ଦଲାଲ ଦୁର୍ନୀତିଖୋର
ବଡ଼ ଆସନରେ ନାହାନ୍ତି କି ? ।୫।
ଧନ୍ୟ ଆମର ମୂର୍ଖ ଜନତା
ଧନ୍ୟ ଆମର ନେତା,
ସତ କଥା ଏଠି କହିବାପାଇଁ କି
ପାଟିରେ ଲାଗିଚି ବତା ।
କାହାକୁ କହିବା ଭଲ -
ଦେବତାର ଜାଲେ ହରାଏ ମଣିଷ
ତାର ଅମୃତ ମୂଲ ।୬।

****

*'ସବୁଜ ଶାନ୍ତି', ଜାନୁୟାରୀ ୯୬ ସଂଖ୍ୟାରେ ପ୍ରକାଶିତ ।*

# ତମେ ଆଉ କାନ୍ଦନାହିଁ

ତମେ ଆଉ କାନ୍ଦନାହିଁ । ଏମିତି ଅନେକ ସ୍ୱପ୍ନ ଭାଂଗିଚୂରି
ଧୂଳି ହୋଇ ଉଡ଼ିଯାଏ ଅଜଣା ପବନେ,
ଆମର ସକଳ ଚେଷ୍ଟା । ସକାଳ ତପସ୍ୟା ଅବା
ସକଳ ସୁକୃତ ସତ୍ତ୍ୱେ ।
ସବୁ ଆଶା ବ୍ୟର୍ଥହୁଏ । ଆସେ ନାହିଁ କୁଂଜର ନାଗର ।
ତମେ ବା କରିବ କ'ଣ ? ମୁଁ ବା କ'ଣ କରିଥାନ୍ତି ?
ଭାଗ୍ୟକୁ ନିଂଦିବା ଛଡ଼ା । ଆଉ କିବା
ପନ୍ଥା ଥିଲା ତମର ଓ ମୋର ।
ଆମେ ଦୁଇ ପଥକ୍ଳାନ୍ତ ପଥର ପଥିକ ।
ଚାରିଆଡ଼େ ଅପନିନ୍ଦା ଅପବାଦ । ଅନେକ ସନ୍ଦେହୀ ଆଖି ।
ଚାରିଆଡ଼େ ବୟସର ସମୟର
ମଉଳା ମର୍ମର ।।
ତମେ ଆଉ କାନ୍ଦନାହିଁ । ଆଖିର ଲୁହରେ ଭିଜାଅନି
ଅଭାଗିନୀ ରାତ୍ରୀର ପଣତ ।
ତମ କୃଷ୍ଣ ଦୀର୍ଘଶ୍ୱାସେ ଥରାଅନି
ହତଭାଗ୍ୟ ଯୌବନର
ପୁଲକିତ ପୁଣ୍ୟ ଦୀପଶିଖା ।

ତଥାପି ଅପେକ୍ଷା କର । ଯେ କୌଣସି ମୁହୂର୍ତ୍ତରେ ।
କେହି ଜଣେ ଆସିପାରେ । ଅକସ୍ମାତ ବିସ୍ମୟରେ
ଆଲୋକି ତ କରି ତମ ରିକ୍ତ ରାଜଧାନୀ ।
ସେ ପର୍ଯ୍ୟନ୍ତ ଦୁର୍ଦ୍ଦିନକୁ କ୍ଷମାକର
ଏବଂ କଳଙ୍କିତ ରାଜତ୍ୱକୁ କର ନମସ୍କାର ।
ଏବଂ ଧରିନିଅ ଆସି ଅଛି
ଜୀବନର ବିଷମ ପରୀକ୍ଷା ।
ଆଗୋ ମୋର ମ୍ଳାନ ହଂସୀ । ଆଗୋ ମୋର
ବିଷର୍ଣ୍ଣ ବିଦିଶା ।
ତମେ ଆଉ କାନ୍ଦନାହିଁ । ମେଘଭରା ଆକାଶକି
କରେ ନାହିଁ ସୂର୍ଯ୍ୟର ପ୍ରତ୍ୟାଶା ।।

****

# ସୁଖ କ'ଣ ? ଦୁଃଖ କ'ଣ ?

ଦୁଃଖ କଣ ?

ଚମକି ଆସୁଥିବା ଶତ୍ରୁର ତରବାରୀ
ନା
ପ୍ରିୟତମର ହସ ହସ କପଟ ବିଶ୍ୱାସ
ନା
ସ୍ତ୍ରୀର ସୈରିଣୀପଣ
ନା
ସନ୍ତାନର ବିମର୍ଷ ଭାଗ୍ୟ
ନା
ବିଫଳତାର ଚରମ ଉପହାସ
ନା
ନିବୀର୍ଯ୍ୟ ପୌରୁଷର କ୍ଲାନ୍ତି
ନା ...
ନା ...
ନା ...
ନା ...

*

ସୁଖ କ'ଣ ?

ସିଂହାସନର ସାଦର ନିମନ୍ତ୍ରଣ
ନା
ଘର ଭର୍ତ୍ତି ଧନଜନର ଆଡ଼ମ୍ବର
ନା

କୂଟ ବୁଦ୍ଧିର କରାମତି
ନା
ଅପକର୍ମର କୁଶଳତା
ନା
ପଞ୍ଚମକାରର ଆଲିଙ୍ଗନ
ନା
ସନ୍ନ୍ୟାସ
ନା....
ନା...
ନା...
*

ସୁଖ କଣ ?
ଦୁଃଖ କଣ ?
ସବୁ ତୋର
ଏକାନ୍ତ ନିଜର ।
କହ କିଏ ପର ?
ନିଜର ରକ୍ତରେ ଗଢ଼ା
ଜଣେ ଯଦି ବିକଳାଙ୍ଗ
ଆଉ ଜଣେ ସୁଢ଼ଳ ସୁନ୍ଦର ।

****

# ତାଲାକ୍

ଧର୍ମର ଏଇ ରୀତି,
ଶାହାବାନୁ ଆଜି ଦାଣ୍ଡ ଭିକାରୀ
ସ୍ୱାମୀ ତା ଲକ୍ଷପତି ।
ନବବଧୂ ତମେ ହୋଇପାର ଅବା
ନବେ ବରଷର ଆଈ,
ତାଲାକ୍ ଦେବାକୁ ଶାସ୍ତ୍ରରେ ଆମ
କେବେହେଲେ ମନାନାଇଁ ।
ଆଜି ରହିପାର ରାଜ ଉଆସରେ
କାଲି ଧରିପାର ଝୁଲି,
ଆଜି ଖାଇପାର ଖିରି ଓ ପଲାଉ
କାଲି ଜଳିବନି ଚୂଲି ।
ବାହାବେଦୀ ଅବା ସିଂହାସନରୁ
ତାଲାକ୍ ଆସିଲା ଯଦି,
ବାର ବରଷର ପୁଣ୍ୟ ତମର
ନିମିଷକେ ହେଲା ରଦି ।

ନାରୀ ଜନମଟା ସହିବା ପାଇଁକି
ଖାଲି ପୁରୁଷର ରାୟ,
ମଣିଷର ହକ୍ ନାହିଁ ତା କପାଳେ
ଚିରଦିନ ଅସହାୟ ।
କିଏ ଖୋଲୁଅଛି ଶାସ୍ତ୍ର ପୁରାଣ
ପାଆଁଶ ବର୍ଷ ପୋଥି
କିଏ କହୁଅଛି ଖୋଦାର ହୁକୁମ
ନାହିଁ ଆଉ ଆନଗତି,
ଅଥଚ ରହିଚି ପାଖେପାଖେ ଆମ
ବିବେକର ଅଭିଧାନ,
ଖୋଜିଲେ ମିଳିବ ତାଲାକ୍‌ର ମାନେ
ତର୍କର ନାହିଁ ଭାନ୍ ।

****

*'ସବୁଜଶାନ୍ତି' ଏପ୍ରିଲ '୮୬ ସଂଖ୍ୟାରେ ପ୍ରକାଶିତ*

# ପୁଣ୍ୟ ଭୂମି

ଯଜ୍ଞ ନାଆଁରେ ଯୋଡ଼ାହୁଏ ଏଠି
ମହଣ ମହଣ ଘିଅ,
ଶାନ୍ତି ନାଆଁରେ ବାଟେ ଘାଟେ ବହେ
ସଂକୀର୍ତ୍ତନର ସୁଅ ।
ଧର୍ମ ନାଆଁରେ ଦେଖଏ ଦେଶରେ
ଭଲିକି ଭଲିକି ନେତା,
ମଠ ମନ୍ଦିର ତୀର୍ଥ ନାଆଁରେ
କଳାଧନ ହୁଏ ପୋତା ।
ପୁନିଅଁ ପରବ ମେଳା ମଉଛବ
ନାଆଁରେ ଚାଲିଛି ଲୁଟ୍,
ଆର୍ଶୀବାଦର ନାଆଁରେ ସାଉଁଟେ
କିଏ ବିଡ଼ା ବିଡ଼ା ନୋଟ୍ ।
ମହାପ୍ରସାଦ ନାଆଁରେ ଟାବୁକ୍
ପାଟି ପାରିବନି ଖୋଲି,
ମୁକ୍ତି ନାଆଁରେ ଯେତେ ପାଗଳାମି
ଚିତା ଓ ଚିମୁଟା ଝୁଲି ।
କହିକି ପାରିବ କେଉଁଠି ହେଉଛି
ନର ଦେବତାର ପୂଜା ?
ପେଟ ବିକଳରେ ମାଗେ ଯିଏ ଭୋଗ
ମୁଠାଏ ଶୁଖୁଟା ଭୁଜା ।

****

*'ସବୁଜଶାନ୍ତି' ମାର୍ଚ୍ଚ ୮୬ ସଂଖ୍ୟାରେ ପ୍ରକାଶିତ*

# ସ୍ୱାଭିମାନ

(ଏପ୍ରିଲ ୨୮, ୧୯୮୬ ମଧୁବାବୁଙ୍କ ଜୟନ୍ତୀ ଉପଲକ୍ଷେ)

ଓଡ଼ିଆ ଜାତିର ସ୍ୱାଭିମାନ ତମେ
ନୂଆ ଓଡ଼ିଶାର ଗର୍ବ,
ସଭା ମଂଚରେ ଗରଜେ ବକ୍ତା
ଯେଉଁଠି ଭାଷଣ ପର୍ବ ।୧।

ତାପରେ ନଥାଏ ତମର ଖବର
ନପଡ଼େ ତମର ନାଆଁ,
ପୂଜ୍ୟ ପୂଜାର ବେପାର ଦେଖିଲେ
କାନ ମାରିଯାଏ ଭାଆଁ ।୨।

ନାଚ ଗୀତ ପୁଣି ବାଣ ଓ ରୋଷଣି
ତା ପଛକୁ ଭୋଜିଭାତ,
କେଉଁଠି ଚାଲିଛି ଠିପି ଖୋଲା ପ୍ରୀତି
ନୂଆ ଦରବାରୀ ଗତ ।୩।

ଫୁଲମାଳ ଧରି କିଏ ସେ ବୁଲୁଛି
ମୂର୍ତ୍ତି ତମର କାହିଁ,
ସଉଧମାଳିନୀ ନୂଆ ରାଜଧାନୀ
ତମକୁ ଚିହ୍ନେ ନାହିଁ ।୪।

କଟକ ନଗର ଧବଳ ଟଗର
ମୁଣ୍ଡ ନେଲାଣି ହାଣି,
ଆଉ ଆଉ କଥା କାହାକୁ କହିବା
ଏଇତ ଆମର ଠାଣି ।୫।
ଯିଏ ବୋଲାଉଛି ତମର ଭକ୍ତ
ତମର ଇଜରାଦାର,
ସେଇଟା ଗୋଟାଏ ଅସଲି ଗୋଲାମ
ନମ୍ବରୀ ଚାଟୁକାର ।୬।
ଯିଏ କହୁଅଛି ତମର ସ୍ୱପ୍ନ
ସଫଳ କରିବା ପାଇଁ,
ଶାସନ ଦଣ୍ଡ ଧରିଛି କେବଳ
ସ୍ୱାର୍ଥର ଲେଶ ନାହିଁ ।୭।
ସିଏ ଗଢ଼ିଲାଣି କୋଠାପରେ କୋଠା
ରାଜକୋଷ ନିଏ ଛାଣି,
ଅଭିନୟ ତାର ଭାରି ତ ଅଜବ
ଧୂର୍ତ୍ତଙ୍କ ଶିରୋମଣି ।୮।
ଯିଏ କହୁଅଛି ତମରି ଭଳିଆ
ମଣିଷ ତିଆରି ଲାଗି,
ଅଧ୍ୟାପନାର ବେତ ମୁଁ ଧରିଛି
ବିଦ୍ୟାର ଅନୁରାଗୀ ।୯।

ସିଏତ ସାଜିଛି ଶାଠ ବିଶାରଦ
ପାଠ ଘର ତାର ଶୂନ
ମନ୍ତ୍ରୀ ହାକିମ ପାଦ ଚାଟୁଅଛି
ଭୁଲି ନିଜ ଅଭିମାନ ।୧୦।
ସେଇମିତି ଯେତେ କବି କଳାକାର
ବୁଦ୍ଧିଜୀବୀର ଦଳ,
ସଭିଏଁ ଆଜିତ ସ୍ୱାର୍ଥ ଗୁହାଳେ
ବଂଧା ବଳଦ ପଲ ।୧୧।
ଯିଏ ହେବ ବଡ଼ ଖିଦ୍‌ମତଗାର
ପାଇବ ଶିରିପାଶାଢ଼ୀ,
ତମେ ଆଜି ଏକ ଅଚଳ ଟଙ୍କା
ପେଡ଼ିରେ ରହିଚ ପଡ଼ି ।୧୨।

****

# ଭଣ୍ଡ ଭଗବାନ

ଦୁନିଆରେ ଆଜି କେତେ ଭଗବାନ
କେତେ ଭଗବତୀ ଲୀଳା,
ଧନିକ ବଣିକ ମନ୍ତ୍ରୀ ପିଆଦା
ସଭିଏଁ ତାଙ୍କର ଚେଲା ।୧
କେତେ ମନ୍ଦିର କେତେ ଆଶ୍ରମ
କମ୍ୟୁନ୍ ହୁଏ ଗଢ଼ା,
ପରମ ଭକ୍ତ ଉପାଧି ମିଳଇ
ରୋଜଗାର ଯାର ଚଢ଼ା ।୨
ଠାଏ ଠାଏ କେତେ ପୂଜା ଅରଚନା
ଜଣାଣ ଭଜନ ପାଲା,
କିଏ ଦିଏ ଗାଡ଼ି କିଏ ଦିଏ ପଡ଼ି
କିଏ ଦିଏ ହୀରାନୀଳା ।୩
ସାରା ଦୁନିଆକୁ ବେକୁବ୍ ବନେଇ
ଧର୍ମବେପାରୀ ଦଳ,
ନିଜପାଇଁ ଗଢ଼େ ସୁନାର ଉଆସ
ଭକ୍ତକୁ କରେ ଖୋଳ ।୪
କିଏ ମହର୍ଷି କିଏ ରାଜର୍ଷି
କିଏ ଦାଦା କିଏ ଦିଦି
ଧର୍ମ ନାଆଁରେ କିଏ ସେ କଲାଣି
ପାଆଁଶ ହଜାରେ ସାଦି ।୫
କିଏ କହୁଅଛି ଯୋଗହିଁ ସତ୍ୟ
କିଏ କହୁଅଛି ଭୋଗ,
କିଏ ବାଣ୍ଟୁଛି କୁହୁକ ବିଭୂତି
କିଏ ସେ କରୁଛି ଯାଗ ।୬

କିଏ କରୁଅଛି ଖପୁରୀ ବେପାର
କିଏ ଧରେ ତଲୁଆର,
ଧର୍ମ ନାମରେ ଭଳି ଭଳି ଭେକ
ଭଳି ଭଳି କାରବାର ।୭
ଦୀନ ଦଳିତର ଜୀବନ ଶାସ୍ତ୍ର
ପଢ଼ିବାକୁ ନାହିଁ ବେଳ,
ଇଥିଓପିଆରେ ମରୁଚି ମଣିଷ
ଲଙ୍କାରେ ମହାଗୋଳ ।୮
ପାଲେଷ୍ଟିନିଆନ୍ ପଡୁଅଛି ବଳି
ଇହୁଦୀର ଯୂପ କାଠେ,
କଳାହାଣ୍ଡିର କରାଳ ମରୁଡ଼ି
ମୋଲିସ୍* ଫାଶିର ଖୁଣ୍ଟେ ।୯
ଏତେବେଳେ କାହିଁ କେଉଁ ଭଗବାନ
କରୁନି କିମିଆଁ ତାର,
ପାରିହେବା ପାଇଁ ଅତ୍ୟାଚାରର
ଦୁଃଖର ପାରାବର ।୧୦
ଦୁନିଆର ଯେତେ ଅସଲି ଭଣ୍ଡ
ଏଇସବୁ ଭଗବାନ,
ଡ଼ଲାରର ମାଳା ନିତି ଜପୁଥିବା
ଗୋଟା ଗୋଟା ସଇତାନ ।୧୧

****

* *ଦକ୍ଷିଣ ଆଫ୍ରିକାର 'ବିଦ୍ରୋହୀ କବି'*

*'ସବୁଜଶାନ୍ତି' ଡିସେମ୍ବର ୮୫ ସଂଖ୍ୟାରେ ପ୍ରକାଶିତ*

# କ୍ଷେତ୍ରବାସୀ ଓ ଜଗନ୍ନାଥ

ସ୍ୱପ୍ନରେ ଦିନେ ଉଭାହେଲେ ଆମ
ଜଗତଙ୍କରତା ଜଗନ୍ନାଥ,
କହିଲେ ତୋହର ମମତା ବାଲିରେ
ଅଟକାଇ ଅଛି ମୋହର ରଥ ।
ଭକ୍ତିରେ ମୋତେ ଆଣିଛୁ ଟାଣି,
ଆଶ୍ରା ଦେବୁକି କୁଡ଼ିଆରେ ତୋର
ଦେବୁକି ହାତର ତୁଳସି ପାଣି ।୧

ଚମକି ଦେଖିଲା ଚନ୍ଦନ ବାସେ
ମହକି ଉଠୁଛି ଘରଟା ଯାକ,
ଦୟଣା ଫୁଲର ଗଂଧେ ମିଶିଛି....
ସତେ ବା କିଏ ସେ କଲା କୁହୁକ ।
ଘାରିଗଲା ଦେହେ ସ୍ୱପ୍ନ ନିଶା,
ଜଗନ୍ନାଥ ହେ.... ଜଗନ୍ନାଥ ହେ.....
ଜପୁ ଜପୁ ପୂବେ ହସିଲା ଉଷା ।୨
ଘରଣୀକୁ ଡ଼ାକି ରାତିର କାହାଣୀ
ଆଦରେ କହିଲା କ୍ଷେତ୍ରବାସୀ
ଜଗାର କିମିଆଁ ପାରୁନାହଁ ବୁଝି
ଅଜବ କିମିଆଁ ଲଗାଏ ଆସି ।

ହେଲା ଫଇସଲା କରିବେ ବିଜେ,
ବଡ଼ ଦେଉଳରେ ବଡ଼ ପଣ୍ଡିତ
ବିଗ୍ରହ ଆଣି ଥାପିବେ ନିଜେ ।୩

ବାର ବରଷକୁ ଅଧିକ ହେଲାଣି
ସଂଜ ସକାଳେ ଯାବତନୀତି
ବାର ଉପବାସ ସବୁଥିରେ ଥାଏ
ଦୁଇ ପରାଣିଙ୍କ ଅଚଳମତି ।
ଦେଖୁ ଦେଖୁ ଦିନେ ଆଚମ୍ବିତେ,
ମଝି ଦରିଆରେ କ୍ଷେତ୍ରବାସୀଁର
ବୁଡ଼ିଗଲା ଭେଳା ଅକସ୍ମାତେ ।୪
ନୀଳଗିରି ଛାଡ଼ି ଜଗତର ନାଥ
ଆସିଲେନି ଟିକେ ହେବାକୁ ସାହା,
ଯେତେ ନିବେଦନ ଭଜନ ପୂଜନ
ଶେଷେହେଲା ସବୁ ମର୍ମଦାହା ।
ସ୍ୱପ୍ନ କୁହୁକ କୁଆଡ଼େ ଗଲା,
ମିଛ ଏ ଦେବତା ମିଛ ତା ଭେଳିକି
ସାରା ଦୁନିଆରେ ଲାଗିଛି ପାଲା ।୫

****

** ଓଡ଼ିଆ ସାହିତ୍ୟର ବିଶିଷ୍ଟ ଗବେଷକ, ସମାଲୋଚକ ଓ ସଂପାଦକ ।*

# ଆଷାଢ଼ ସଂଜ

ଆଜି ଏଇ ଆଷାଢ଼ର ସଂଜେ,
ମେଘର ବଉଳଫୁଲ କିଏ ସେ ସଜାଏ
ଆକାଶର ନୀଳକେଶ କୁଂଜେ ।
ଏତେବେଳେ ମନେପଡେ, ରାମଗିରି, ମେଘଦୂତ,
ଏବଂ ଯକ୍ଷ ଯୁବକର ଗୀତ ।
ପ୍ରବାସରେ ପ୍ରିୟତମା, ଯୋଜନ ଯୋଜନ ଦୂର ।
ଏବଂ ଆମ ଗାଆଁ, ବିଲବଣ, ସାଇଁ ସାଇଁ
ହେ ମାଳ ପବନ, ବେଙ୍ଗ ଆଉ ଡ଼ାହୁକର ଡ଼ାକ ।
କାହିଁ ମୋର ରାଜଧାନୀ । କାହିଁ ମୋର ଗଜଲର ସୁର ।

ଆଷାଢ଼ କି ଉଦନ୍ତ ଆଣିଛି, ରଜୋବତୀ ମାଟି ପାଇଁ,
ଯକ୍ଷପାଇଁ, ଯାଯାବର ପାଇଁ,
ମୋ ପାଇଁ ବା ତମ ପାଇଁ । ସୁଭାଗୀ ବା
ଅଭାଗିନୀ ପାଇଁ, କେହି ଜାଣେନାହିଁ ।
ତଥାପି କଦଂବ ବନେ ଝରିଯାଏ
ମମତାର ସୁରା,
ବରଷାରେ, ବିଜୁଳିରେ, ବରଷାରେ,
ପବନରେ, ମାଟିର ଗଂଧରେ,

କେତେ ଯେ ଉତ୍ତାଳ ଆଶା,
କେତେ ଯେ ରସାଳ ଭାଷା,
ଆକୁଳତା ବ୍ୟାକୁଳତା,
କାମନାର ବିମୁଗ୍ଧ ଇସାରା ।
ଆଷାଢ଼ ମିଳନ ହେଉ, ବିଛେଦ ହେଉ ।
ସୁଖ ହେଉ, ଦୁଃଖ ହେଉ, ଆର୍ଶୀବାଦ ହେଉ,
କିଂବା ଅଭିଶାପ ହେଉ ।
ରସବତୀ ଆଶ୍ଳେଷରେ ଦିନ ପାହୁ, ରାତି ପାହୁ,
କିଂବା କେଉଁ ବିରହିଣୀ ରାଧିକାର ଆଖିର ଲୁହରେ
ଭାସିଯାଉ ସପନର ଢେଉ ।
କିଂତୁ ପ୍ରତି ଆଷାଢ଼ରେ ବନ୍ୟା ଆସୁ ରକ୍ତର ନଦୀରେ,
ଗ୍ରୀଷ୍ମର ପୃଥିବୀ ହସୁ ଉନ୍ମାଦିତ ବର୍ଷାର ଗଂଧରେ ।

****

# ବାଲିଆପାଳ

ମାଟିର ମମତା

ସମୁଦ୍ରର ସ୍ନେହ

ଆକାଶର ଆତ୍ମୀୟତା ।

ତୋ ପାଇଁ

ସବୁ ମିଛ, ସବୁ ନିରର୍ଥକ

ବେକୁବ୍ ଜନତା ।।

ଗଣତନ୍ତ୍ର

ସମାଜବାଦ

ଗାନ୍ଧିଜୀଙ୍କ ସ୍ୱପ୍ନର ଭାରତ ।

ଆରେ ବୋକା

ସବୁ ଧୋକାବାଜି

ତୋ ପାଇଁ ନାନା ବାୟାଗୀତ ।।

"ହାତୀ ଦେବି

ଘୋଡ଼ା ଦେବି

ଆକାଶରୁ ଚାନ୍ଦ ଆଣିଦେବି" ।

କଥା ମାନ୍

ଛାଡ଼ିଦେ ବାଟ

ଏଇବାଟେ ଯିବେ ତୋର ଭାଗ୍ୟଦେବୀ ( ? ) ।।

ଏକଥା ନିହାତି ସତ

ପ୍ରତିଶ୍ରୁତି ପ୍ରେସ୍‌ନୋଟ

ମଣିଷକୁ ଦିଏ ନାହିଁ ଦାନା ।

ଅଥଚ ତୋ ଭାତଥାଳି

ଛଡ଼ାଇ ନେବାକୁ

ଜାରିହୁଏ ନିତି ପରୱାନା ।

****

# ସତୀ

ଧୂପଦିଅ, ଦୀପ ଦିଅ,
ଚନ୍ଦନରେ ସଜାଅ ସତୀକୁ ।
ଶଙ୍ଖ ହୁଳହୁଳି ଦିଅ,
ସତୀ ଯିବ ପତିର କୋଳକୁ ।

ପାଦରେ ଅଳତା ଦିଅ,
ସୀମନ୍ତରେ ସଜାଅ ସିନ୍ଦୁର ।
ପତି ବିନା ସତୀ ନାରୀ -
ଜୀବନଟା ଖାଲି ହାହାକାର ।

ପତିର ଚିତାରେ ଜଳିଗଲା ଆଜି
ଭାରତର ସତୀନାରୀ,
ମୂର୍ଖ ଜନତା ଚାରିପାଖେ ତାର
ବଜାଇଲେ ଭେରି ତୁରୀ ।

କିଏ ଫିଙ୍ଗିଲା ଅରୁଆ ଚାଉଳ
କିଏ ଫିଙ୍ଗିଲା ଫୁଲ,
ଜୟ ସତୀ ନାରୀ ଜୟ ସତୀ ନାରୀ
ସଭିଏ ଧରିଲେ ତାଳ ।

କରୁଣ ତାହାର କ୍ରନ୍ଦନ ରୋଳ
ଛୁଇଁଲାନି କାହାଛାତି,
ଦଶ ଦିଗପାଳ କାନ୍ଦିଲେ ସିନା
ଦେଖି ନିଷ୍ଠୁର ରୀତି ।

ଆଠ ଦଶକୋଶ ଦୂରରୁ ଅଇଲେ
ଭକୁଆ ଦେଖଣାହାରୀ,
ମଶାଣି ଭୂଇଁରେ ମେଳା କି ବସିଲା
କିଣା ବିକା ହେଲା ଭାରି ।

ସରକାରୀ ଆଖି ପାରିଲାନି ଦେଖି
ଏଇ ବର୍ବର ଲୀଳା,
ଗଣତନ୍ତ୍ରର ଦେଶରେ ଆଜି ବି
ଚାଲିଛି ଭଣ୍ଡ ପାଲା ।

ଧର୍ମକୁ ମୋର ଦୂରରୁ ଜୁହାର
ବିଧର୍ମୀ ହେବା ଭଲ,
ଯିଏ ମଣିଷକୁ ଦିଏ ସମ୍ମାନ
ଦିଏ ମଣିଷର ମୂଲ ।

****

# ରାମଲୀଳା

ରଘୁ କୁଳ ତିଳକ    ରାମଚନ୍ଦ୍ର କି ଜୟ,
ସୀତା ପତି ସୁନ୍ଦର ରାମଚନ୍ଦ୍ର କି ଜୟ ।

ନୂଆ ଦିଲ୍ଲୀର ରାଜପଥେ ଆଜି
ରାମଲୀଳା ପଟୁଆର,
ଉଛୁଳି ପଡୁଛି ଗଗନ ପବନ
ସୀତାରାମ ଜୟକାର ।

ଭକ୍ତି ନିଶାରେ ମାତାଲ ସଭିଏ
ବାଟ ନପଡ଼ଇ ଜଣା,
କିଏ ସେ ମାନୁଛି ପୋଲିସ ହାକିମ
କାନୁନର କଟକଣା ।

ରାମହିଁ ଆମର ପଣ,
ଯୁଗ ଯୁଗ ଧରି ଭାଂଗିଛି ଯିଏ
ଅତ୍ୟାଚାରୀର ଟାଣ ।

ହଠାତ୍ ଶୁଭିଲା ପୋଲିସର ତୁରୀ
ଛୁଟିଲା ଲୁହର ଧୂଆଁ,
ତାପରେ ପଡ଼ିଲା ଲାଠିର ପାହାର
ଜଳିଲା ଯୁଦ୍ଧ ନିଆଁ ।

ରାମବଳ ଆଉ ଠେଙ୍ଗାର ବଳ
କିଏ ସେ କାହାକୁ ଊଣା,

ଘଡ଼ିକ ଭିତରେ ପାଇଗଲେ କେତେ
ମୋକ୍ଷର ପରୱାନା ।
ଧନ୍ୟ ରାମର ଲୀଳା,
ଭକ୍ତର ଲାଗି ଅପାର କରୁଣା
ଧଳା ହୋଇଯାଏ କଳା (?)
କେତେ ଯେ ଭକ୍ତ ହାସ୍‌ପାତାଳରେ
ଗଣିଲେ ନିଜର ଦିନ,
ହାତଗୋଡ଼ କାର କଟାଗଲା ପୁଣି
ଦୃଷ୍ଟି ହୋଇଲା କ୍ଷୀଣ ।
କିଏ ସେ କହିଲା ହାରାମି ପୋଲିସ୍
ଆଖିକାନ ନାହିଁ ତାର,
କିଏ ସେ କହିଲା ଭାଗ୍ୟର ଖେଳ
ନାହିଁ ତାର ପ୍ରତିକାର ।
ହେ ରାମ- ନମସ୍କାର !
ଧର୍ମ ନାମରେ ସାରା ଦୁନିଆଟା
ହେଉଥାଉ ଛାରଖାର ।

****

# ତାନ୍ତ୍ରିକ

ଜୟମା କରାଳୀ କାଳି,
ବାପ ବନିବାକୁ ମହାତାନ୍ତ୍ରିକ
କନ୍ୟାକୁ ଦିଏ ବଳି ।୧
ଦୁଇଟି କଅଁଳ କିଶୋରୀର ମୁହଁ
ଆଖିରେ ଉଠୁଚି ନାଚି,
ସକାଳର ଫୁଲ ସଂଜେ ଝରନ୍ତା
କେତେ ହସ ଖେଳ ରଚି ।୨
କୋଟି କୋଟି ଶିଶୁ ଭିତରୁ ହୁଏତ
ଗୋଟିଏ ହୁଅନ୍ତା ସେରା,
ରୂପରେ ଗୁଣରେ ଜଳିଥାନ୍ତା ସେ
ଚନ୍ଦ୍ର ଉଦିଆ ପରା ।୩
ନିଷ୍ଠୁର କଥା କହିଲାବେଳକୁ
ପାଟି ମାରିଯାଏ ଖନି,
ବାପଟା କିପରି ଶୟତାନ ହେଲା
ଗୁରୁର ଆଜ୍ଞାମାନି ।୪
ତେତ୍ରିଶ କୋଟି ଦେବତା ସେଦିନ
ଏପରି ଘୃଣ୍ୟ ଲୀଳା,
ସହିଲେ କିପରି ? ସିଂହାସନ କି
ତିଳେ ହେଲେ, ନ ଥରିଲା ।୫

ମଲା ମଣିଷକୁ ଜିଆଁଇବା ଲାଗି
ତନ୍ତ୍ରର କରାମତି,
ତା ସାଙ୍ଗକୁ ପୁଣି ଧନ ଦଉଲତ
ମିଳିବାର ଆଶା ଅତି ।୬

ସବୁ ମିଛ ସବୁ ଡ଼ାହା ଭାଣ୍ଡାମି
ସବୁ ଜାଲି କାରବାର,
ତଥାପି ସେଇଠି ନୁଆଁଉଛି ମଥା
ଦେଶ ଆଉ ସରକାର ।୭

ବେକୁବ୍ ମଣିଷ ତନ୍ତ୍ର ମନ୍ତ୍ର
ମାୟାରେ ଯାଉଛି ଭୁଲି,
ଦେବ ଦେବୀଙ୍କ ସନ୍ତୋଷ ଲାଗି
ରକ୍ତରେ ଖେଳେ ହୋରି ।୮

ସିଦ୍ଧି ଫିଦ୍ଧି କିଛି ମିଳେନାହିଁ
ଝୁରିବାଟା ହୁଏ ସାର,
ଅଂଧ ଦେଶରେ ଦର୍ପଣ ମୂଲ
ନଦାରଦ ଏକବାର ।୯

****

# ଶଙ୍କରା ମା

ମାଛ ନବ ? ମାଛ ନବ ?
ଗାଁ ଦାଣ୍ଡେ ଶୁଭିଲାଣି ଡ଼ାକ ।
ଶଙ୍କରା ମା ଆସିଲାଣି,
ମାଛ ଖିଆ ପାଟି ସବୁ ।
ଅନାହୁତ ମଧୁର ବାସ୍ନାରେ
ଖାଲି ଛକ ଛକ ।।
ସମସ୍ତଙ୍କ ଆଖିରେ ସେ,
ଖାଲି ମାଛବାଲିଟାଏ ସିନା ।
କିନ୍ତୁ ତାର ଭିନ୍ନ ପରିଚୟ ।
ଆମ ଗାଁ ଦାଣ୍ଡ ଧୂଳି ମାଟି
ପାଣି କାଦୁଅର ଦୁନିଆରେ ।
ସିଏ କେଉଁ କଦମ୍ବିତ ଅଭାଗୀ ଅପ୍ସରୀ ।
କାରୁଣ୍ୟର ସୁଦୀର୍ଘ ଅଧ୍ୟାୟ ।।
ସିଏ କଣ ଜାଣିଥିଲା, ଅଦିନରେ ଭାଂଗିଯିବ ।
ତା ସ୍ୱପ୍ନର ସୁନାର ମନ୍ଦିର ।
ସିଏ କଣ ଜାଣିଥିଲା, ତା ରକ୍ତର କିଆରୀରେ ।
ପୁଅ ତାର ଖେଳୁ ଖେଳୁ । ଭଂଗା ହେବ
ତା ଶଂଖା ସିନ୍ଦୁର ।।
ସିଏ କଣ ଜାଣିଥିଲା, ସେ କେଉଁ ଦୁର୍ଦ୍ଦାନ୍ତ ଡ଼ାକୁ ।
ଅକସ୍ମାତ୍ ଦିନେ ଆସି ଲୁଟିନେବ ।
ତା ସୌଭାଗ୍ୟ ସଂଚିତ ଭଣ୍ଡାର ।

ସିଏ କଣ ଜାଣିଥିଲା, ସୀମାହୀନ ଆକଶର
ନୀଳିମାର ଅନ୍ତରାଳେ ଥାଇପାରେ ।
ଶତ ଶତ ବିଷଧର ସର୍ପର ଫୁତ୍କାର ।।
କୋଳକୁ ଆସିଲା ପରେ, ତା ରକ୍ତର ରାଜପୁତ୍ର ।
ଶଙ୍କରମା ଭୁଲିଯାଏ ତା ଲାଜର, ତା ଭୟର ନୀରବ ଇଲାକା
ବଣିକ ପସରା ଧରି, ଗାଁ ଗାଁ ବୁଲୁ ବୁଲୁ ।
ଗଡ଼ିଯାଏ ଖରାବେଳ, ସରିଯାଏ ତାର ମାଛ ବିକା ।।
ସ୍ତନହରା ମୋ ମାଆର ବିକଳ ବିମର୍ଷ ଆଖି ।
ଖୋଜୁଥାଏ ତା ଛାତିର ନିଟୋଳ ବିଶ୍ୱାସ ।
ଶଙ୍କରାମା ଖୋଜୁଥାଏ କେଉଁଠି ଅଜାଡ଼ି ଦେବ ।
ଏଇ ତାର ସ୍ତନଭରା ମାତୃତ୍ୱର ନିବିଡ଼ ଆଶ୍ଲେଷ ।।
କି ଅପୂର୍ବ ଯୋଗ ଦେଖ, ତୃଷାର୍ତ୍ତ ଶୈଶବ ମୋର ।
ଅମୃତ ବର୍ଷାରେ, ହେଲା ପୁଲକିତ ଏବଂ ପଲ୍ଲବିତ ।
ତାପରେ ଅନେକ ବାଟ, କିଏ କେଉଁ ନାଟର ନାୟକ ।
ସ୍ମୃତି ହୁଏ ଇତିହାସ, ଇତିହାସ ପାଲଟେ ଅତୀତ ।।
ଶଙ୍କରା ମା ଆଜି ନାହିଁ, ଦେଖିବାକୁ ତା ଦାନରେ ।
ପରିପୁଷ୍ଟ ମୋ ଦୁର୍ବାର ଅଭିଳାଷ,
କିଂବା ମୋର ନିସ୍ୱ ନହବତ ।
ବିଗତ ଦିନର ଗୀତ ମନେପଡ଼େ, ସେ ଅତୀତ,
ହେଉ ପଛେ ସୁଖ ଅବା ଦୁଃଖ ଆମୋଦିତ ।।

****

# ଛୁଟିର ଶେଷ : ଗାଁ

ଏଇ ଗାଆଁ ଧୂଳିମାଟି,
ଅବୁଝା ଶିଶୁଟି, ମାଆର ପଣତ ପଛରୁ ଟାଣିଲା ପରି,
ଲାଗେ ମୋତେ ଯେବେ ସରି ସରି ଆସେ ଛୁଟି ।।୧

ଚିର ପରବାସୀ କବି, ଗ୍ରୀଷ୍ମ ବରଷା ଶୀତ ବସନ୍ତ
ପାରେ ନାହିଁ ଅନୁଭବୀ ।।୨

ସହର ଜାଣେନା
ବୈଶାଖୀ ଖରା, ଶ୍ରାବଣ ବରଷା ବଢ଼ି,
ହାଡ଼ଭଂଗା ଜାଡ଼ ନଥାଏ ସହରେ
ପୋଡ଼ା ପେଟ୍ରୋଲ ଚିମିନି ଧୂଆଁରେ
ଶୁଖି ଝଡ଼ିଯାଏ, ଚଇତି ଗଜରା କଢ଼ି ।।୩

ସହରେ ନଥାଏ -
ରଜର ମଉଜ/କିଶୋରୀଙ୍କ କୋଳାହଳ ।
ଭରତ ବୁଢ଼ର ଢୋଲ, ଚଡ଼ଚଡ଼ି,
ହା ଡୁ ଡୁ, ହା ଡୁ ଡୁ,
ଟୋକାଙ୍କ ବାଗୁଡ଼ି ଖେଳ,
ପଚା ଓ ପୁନିଆ ରଗଡ଼ ଝଗଡ଼
ସରେ ନାହିଁ ତାଙ୍କ ଗୋଳ ।।୪

ସହର ବୁଝେନା - ଜହ୍ନିଫୁଲ ଆଉ କାକୁଡ଼ି ଫୁଲର ଗୀତ ।
ଅଳସ କଇଁର ନୀରବ ସୋହାଗ
ନୀଳ ଜୋଛନାର କୋମଳ ସରାଗ,
କିଆ ବକୁଳର ଉଲ୍ଲାସ ସୁରଭିତ ।।୫

ସହରେ ମିଳେନା -
ପଡ଼ିଶା ଅଡ଼ିଶା, ହସ ଖୁସି ସମାଚାର ।
କିଏ ମଲା ଗଲା, ହଜିଲା ଖୋଜିଲା,
ନଥାଏ ଖବର ତାର ।
ଅଖିଳ ମା'ର ପାଇକାଳି ପଣ,
ମାଗୁଣିଆ ବୋହୂ ନିଖୁଣ ପାଇଟି
କିଣିଛି ସଭିଙ୍କ ମନ ।
ସଂକୀର୍ତ୍ତନିଆ ପାତ୍ର ବୁଢ଼ାର
ନଥାଏ ଆପଣା ପର ।
ଭାରି ମଜା ଲାଗେ
ଫମ୍ପା ତଇଲା ବାହାପିଆ କଥାମାନ ।।୬

ଚହଟ ଚିକ୍କଣ ସହରୀ ମାୟାରେ
ଗାଁର ମମତା ନାହିଁ ।
କାଫେ ଓ ବଫେର ଗହଳି ଭିତରେ
ତାମ୍ପଡ଼ା ଶୁଖୁଆ ପଖାଳ ଭାତର
ସୁଆଦ ମିଳିବ କାହିଁ ।।୭

****

ଭରତ ବୁଢ଼ - ଗାଁର ବାଜାବାଲା
ପଚା ଓ ପୁନିଆଁ - ଦୁଇଜଣ ପୋଖତ ଖେଳାଳୀ
ସଂକୀର୍ତ୍ତନିଆ ପାତ୍ର - ସଂକୀର୍ତ୍ତନ ପ୍ରେମୀ କୃତିବାସ ପାତ୍ର
ଫମ୍ପା ତଇଲା - ତ୍ରିଇଲୋକ ସାମନ୍ତର ଡ଼ାକନାମ
ମାଗୁଣିଆ ବୋହୂ - ମାଗୁଣି ପଟ୍ଟନାୟକର ସ୍ତ୍ରୀ (ଘର କାମରେ ଧୁରନ୍ଧର ଓ ପରୋପକାରିଆ)

# ମୁଠାଏ ଲୁଣ

(୧୯୮୮ ଏପ୍ରିଲରେ ସ୍ୱାଧୀନତାର ୪୦ବର୍ଷ ଓ ନେହେରୁ ଜନ୍ମଶତବାର୍ଷିକୀ ଉପଲକ୍ଷେ ଆୟୋଜିତ ଦାଣ୍ଡି ଅଭିଯାନ ଉଦ୍ଦେଶ୍ୟରେ)

(୧)

ମୁଠାଏ ଲୁଣର ଅଭିମାନ
ଦେଇଥିଲା ମୁକ୍ତିର ସଂଧାନ
ତ୍ରିଂଶ କୋଟି ଜନତାର ଶପଥ ମହାନ
ଅହିଂସାର କଠୋର ଆହ୍ୱାନ
ଦାଣ୍ଡି ଅଭିଯାନ ।

(୨)

ଆଜି ପୁଣି ଦାଣ୍ଡିଯାତ୍ରା
ଆଜି ପୁଣି ଶପଥର ଦିନ,
ହଟାଓ ବେକାରୀ ଆଉ ହଟାଓ ଦୁର୍ନୀତି
ଥାକ ଥାକ ଶୀତଳ ସ୍ଲୋଗାନ ।
ବିକ୍ରମରେ ମାଡ଼ିଯାଏ
ନେତାଙ୍କର ଦୀର୍ଘ ପଟୁଆର,

ପ୍ରେସ୍, ଟିଭି, ରେଡ଼ିଓରେ
ଜମିଯାଏ ସଂଧ୍ୟାରେ ଆସର ।
ଜାଗହେ ଭାରତବାସୀ
ଜାଗ ଜାଗ ନିରନ୍ନ ନିରକ୍ଷ,
ବରାଦିଆ ଭାଷଣରେ
ଥରିଉଠେ କୋମଳ ବିବେକ ।
ଜାଗହେ ଭାରତବାସୀ
ଡ଼ାକିଯାଏ ନିଲଠା ପବନ,
ଦୁନିଆର ଉପହାସ
ଲମ୍ଭିଯାଏ ଯୋଜନ ଯୋଜନ ।

(୩)

ଶସ୍ୟବତୀ ହୁଏନାହିଁ ବସୁଂଧରା
ଶୁଣିଶୁଣି ମୁତଫର୍କା ମେଘର ଗର୍ଜନ,
ଭାଗ୍ୟବତୀ ହୁଏନାହିଁ ଇତିହାସ
ଦେଖି ଦେଖି ମହାର୍ଜାଙ୍କ ସୁନା ସିଂହାସନ ।

****

# କପିଳାସ

କପିଳାସ, କପିଳାସ,
ପୁରାଣ ମହିମା ମଣ୍ଡିତ ଭୂମି
ଆଜି କି ସର୍ବନାଶ ।।୧
ତୋର ଧୂଳିକଣା ପୁଣ୍ୟ ମମତା
ଗାଉଛି ଭକ୍ତଜନ ।
ଯମ ପରାଭବ ନଥାଏ ଜୀବନେ
କଲେ ଥରେ ଦର୍ଶନ ।।୨
କପିଳାସ ପତି ନୀରବେ କିପରି
ଦେଖିଲେ ଘୃଣ୍ୟ ଖେଳ,
ଟଂକୁବାଳାର ରକ୍ତ ମାଉଁସ
ଖାଇଲେ ଅସୁର ଦଳ ।
ତ୍ରିଶୁଳ ଡମରୁ ସେତେବେଳେ କିଆଁ
ଗର୍ଜି ଉଠିଲା ନାହିଁ,
ଡମରୁ ସେନାନୀ ନୀରବ ରହିଲେ
ପ୍ରେତ ଓ ପିଶାଚକୁଳ ।।୩
ସରଳା କିଶୋରୀ କିପରି ବୁଝିବ

ବିଶ୍ୱାସେ ମିଶେ ବିଷ,
ଧର୍ମପୀଠରେ ସଂଭବ ପୁଣି
ଶଠତାର ଅଭିସାର ।
କୁଳପତି ଠାରେ କୁଳବୁଡ଼ା ପଣ
ନେତା ଅନୀତିର ଖଣି,
ବିଷମ ରୀତି ଏ ଆମ ଦୁନିଆର
କିଏ ନିଜ କିଏ ପର ।।୪
ଗଂଗୁବାଳାର ଜୀବନ ପ୍ରଦୀପ
ତମର ପ୍ରଦୀପ ପାଶେ
ପାରିଲନି ଜାଣି ? କପିଳାସ ପତି !
ଲିଭିଗଲା ଅନାୟାସେ ।
ଧର୍ମ ନୁହେଁ କି ଖାଲି ପ୍ରତାରଣା
ମିଥ୍ୟାର ଜଉଘର,
ଠାକୁର ଦେବତା ସବୁ ଅର୍କମା
ଅଂଧ ଜାମିନଦାର ।।୫

****

*କପିଳାସ ବୁଲିବାକୁ ଯାଇଥିବା ୧୫୦ଜଣ ଛାତ୍ରୀଛାତ୍ରୀଙ୍କ ମଧ୍ୟରୁ ଜଣେ ଛାତ୍ରୀର ରହସ୍ୟଜନକ ମୃତ୍ୟୁ । ଶିକ୍ଷକମାନେ ଫେରାର । 'ସମାଜ' ୨୮.୨.୮୮*

# ଶାନ୍ତିନିକେତନ

ସେଦିନ ତରୁଣ କବି ଛାଡ଼ି ନିଜ ପିତାମାତା ପରିଜନ,
ପ୍ରିୟତମା, ପ୍ରିୟ ଗାଁ ଭୂଇଁ,
କେତେ ଆଶା ବିଶ୍ୱାସରେ ଆସିଥିଲା ଧାଇଁ ।
ଶାନ୍ତିନିକେତନ-କଳା ଆଉ କବିତାର
ପଦ୍ମବନ ମଧୁଟିକେ ପାଇଁ,
କବିଗୁରୁ ରବୀନ୍ଦ୍ରର ସ୍ୱପ୍ନ ଭିଜା ସାମାଜ୍ର୍ୟର
ସୀମାହୀନ ସଂଭାବନା ଛୁଇଁ ।
ହସୁଥିଲା ମହାକାଳ - ଅବୁଝା/ଅଝଟ କବି
ଦେଖିଲା ସାମ୍ନାରେ ଅକସ୍ମାତ ଉଭା
କେଉଁ ଏକ ପିତୃହୀନ ଅଶ୍ରୁଳ ସକାଳ,
ଗଗନରେ ପବନରେ ଶୂନ୍ୟତାର କରୁଣ ରାଗିଣୀ
ହଜାଇଛି କବି ତା'ର ପତ୍ର କୁଡ଼ିଆର ଏକାନ୍ତ ସଂବଳ ।
ଚରୈବତି.. ଚରୈବତି.. ହଠାତ୍ କିଏ ସେ ଦିନେ କହିଦେଲା
କବିର କାନରେ । ଭାଂଗିଦେଲା
ଅବରୁଦ୍ଧ ଅଂଧାରୀ ଦେଉଳ

ଆଉଥରେ ମହକିଲା କଂଦବ ଫୁଲର ବାସ୍ନା, ଆଉଥରେ
ମହକିଲା ଶାଳବିଥି ଆମ୍ରକୁଂଜ
ହେଲା ଖୁବ୍ ସୁନ୍ଦର ଉଜ୍ଜ୍ୱଳ ।
ତାପରେ ଶାନ୍ତିନିକେତନ ରାହା ଦେଲା, ଶାହା ଦେଲା,
କବିର ଭାଗ୍ୟରେ ଦେଲା
ବିଶ୍ୱନୀଡ଼ ସଂଧାନର ବିପୁଳ ପ୍ରତ୍ୟୟ ।
ଭୁଲିଯାଅ ଅହଂକାର, ଭୁଲିଯାଅ ନୀଚତା, ନ୍ୟୁନତା
ଭୁଲିଯାଅ ଜୀବନର ସଫଳତା ବିଫଳତା
ଭୁଲିଯାଅ ଜୟ ପରାଜୟ ।
ଶିଖାଇଲା ଧନ ନୁହେଁ, ଜନନୁହେଁ,
ନାରୀ ନୁହେଁ, ନୀରା ନୁହେଁ,
ମଣିଷକୁ ଭଲପାଅ - ଏଇ ମାତ୍ର ବଂଚିବାର
ମୁଗ୍ଧ ପରିଚୟ,
ଆଜି ବି କାନରେ ବାଜେ ପ୍ରାଣଛୁଆଁ ସେଇ ଗୀତ
"ଆମାଦେର ଶାନ୍ତିନିକେତନ" ଅତି ପ୍ରୀତିମୟ ।

****

# ଉଣେଇଶ ଅଣାନବେ

ବିପୁଳ ତମର ଦାନ,
ବିଦାୟର ଆଜି ଶୁଭଲଗ୍ନରେ
କବିର ପ୍ରଣାମ ଘେନ ।
ଉଣେଇଶ' ଅଣାନବେ
ମୁକ୍ତିନିଶାରେ ତମେ ଚଞ୍ଚଳ
ସଂଗ୍ରାମ ତମ ଚିର ଅବିଚଳ
ମାନବ ଜାତିର ଇତିହାସେ ତମେ
ଧ୍ରୁବତାରା ହୋଇ ଜଳୁଥିବ ଗଉରବେ ।
ଉଣେଇଶ' ଅଣାନବେ
ତମେ ଭାଂଗିଚ ପଥର ପାଚେରୀ
ବର୍ଲିନ ବୁକୁପରେ,
ଜର୍ମାନ ଜାତି ଏକଜୁଟ ହୁଅ
ଡ଼ାକିଛ ବଜ୍ରସ୍ୱରେ ।
ରୁମାନିଆ ଶିରେ ବିଜୟ ମୁକୁଟ
ବାଂଧି ଦେଇଛ ହେଲେ,
କମାଣର ଗୁଳା ବଂଧୁକ ଗୁଳି
ଡରାଇ ପାରେନି ତିଳେ ।

ପାକ୍ ସେନାର ଦାମ୍ଭିକପଣ
    ଦେଇଛ ଧ୍ୱଂସ କରି ।
ନାରୀକୁ ଦେଇଛ ନାରୀ ନିନ୍ଦୁକ
    ଜାତିର ଭାଗ୍ୟଡ଼ୋରି ।
ଦଲାଲ ଦାଉରୁ ରକ୍ଷା କରିଛ
    ଭାରତର ନିଜ ମାନ,
ସାକାର କରିଛ କୋଟି କୋଟି ଦୀନ
    ଜନତାର ଅଭିମାନ ।
ହଙ୍ଗେରୀ ଆଜି ମୁକ୍ତି ପାଗଳ
    ପାଗଳ ବୁଲ୍‌ଗେରିଆ,
ମନ୍ତ୍ର ତମର ବ୍ୟର୍ଥ ହୋଇନି
    ଚାଇନାରେ ଜଳେ ନିଆଁ ।
ଋଷିଆକଣ୍ଠେ ତମେଇ ଦେଇଛି
    ପେରିସ୍ତ୍ରୋଇକାର ଗାନ
ତମ ମନ୍ତ୍ରଣା ବଳେ କୋଳା କୋଳି
    ମସ୍କୋ ଓ ଭାଟିକାନ ।
        ଉଣେଇଶ ଅଣାନବେ
ଅସୁମାରି ତମ ଦାନର ମହିମା
ଗାଇବ ବିଶ୍ୱ ଉଲ୍ଲାସ ଅନୁଭବେ ।

****

## ରିଙ୍କି ପାଇଁ ଗୋଟିଏ କବିତା

ମାଆ ମୋର ରୂପାୟରା ବସନ୍ତର ମଧୁର ଗଜଲ ।
ମାଆ ମୋର ମଧୁକ୍ଷରା ପୃଥିବୀର ମାୟାର ଫସଲ ।।
ମାଆଲୋ ! ତୋ ଶୂନ୍ୟ ଥାଳରେ ଅଂଜୁଳାଏ
ସତ୍ୟ କିଂବା ମିଥ୍ୟା କିଂବା
ସ୍ୱପ୍ନ କିଂବା କଳ୍ପନାର ଉପହାର -
ଦେବାପାଇଁ ନାହିଁ ମୋର ତିଳେ ଅହଂକାର ।
ଯେହେତୁ ମୁଁ ଠିକ୍ ଜାଣେ କାହାରି ଦାନରେ କେବେ
ଭରେ ନାହିଁ କାହାର ଭଣ୍ଡାର
ସିଂଧୁ ଗଂଗା ବ୍ରହ୍ମପୁତ୍ର -
ଅକୁଣ୍ଠିତ ଉଦାର ପଣରେ
ପୂରେନାହିଁ ସମୁଦ୍ରର ବିଶାଳ ଉଦର ।।
ମାଆଲୋ ! ତୋ ପାଇଁ ମୋର କିଛି ଆସ୍ଫାଳନ ନାହିଁ
ଗଢ଼ି ଦେବି ସୁନା ଚାନ୍ଦ ଗଢ଼ିଦେବି ରୂପା ଚାନ୍ଦ
ଅଂଜୁଳା ଅଂଜୁଳା କରି ଢ଼ାଳି ଦେବି ଧନର ବରାଦ ।
ଏକଥା ନଜାଣେ କିଏ ମଲାବେଳେ ନେଲା କ'ଣ ?
ମଦମତ୍ତ ଦୁର୍ଦ୍ଧର୍ଷ ମାମୁଦ ।।
ମାଆଲୋ ! ତୁ ହେବୁ ତୋର ନିଜ ପରିଚୟ
ନିଜର ଶକ୍ତିରେ ହେବୁ ସୁହାସିନୀ

ସୁହାଗିନୀ, ସ୍ନିଗ୍ଧାୟିତ ରୁଚିର ଯାମିନୀ ।
ନିଜ ରୂପ ରସ ଗଂଧେ ଆଲୋକିତ କରି ଏ ପୃଥିବୀ
ତୁ ଲେଖିବୁ ନୂଆ ଇତିହାସ,
କେଉଁ ଏକ ଉର୍ବଶୀ ବା
ଅରୁନ୍ଧତୀ ଜୀବନର ମୁର୍ଚ୍ଛିତ ରାଗିଣୀ ।।
ମା'ଆଲୋ ! ମୋ ଆଶୀର୍ବାଦ ଯଦି କେବେ ହୁଏ ପୁଣ୍ୟବତୀ,
ଧନ୍ୟ ହେବ ପିତୃତ୍ୱର ଉପତ୍ୟକା ମୋର ।
ଦୁର୍ବୋଧ୍ୟ ସମୟ ! ଯିଏ ମୋ ସହିତ ବାରଂବାର ପ୍ରତାରଣା କରି
ବଜାୟ ରଖିଛି ତା'ର ବଡ଼ପଣ
ତୋ' ପ୍ରତି ସଦୟ ହେଉ ଅନ୍ତତଃ ଏଥର ।।

****

# ପିଙ୍କୁ ପାଇଁ ଗୋଟିଏ କବିତା

ପିତୃତ୍ୱର ଦିଗ୍‌ବଳୟକୁ ଉଦ୍ଭାସିତ କରି
        ମୋର ପତ୍ର କୁଡ଼ିଆକୁ
ତୁ ଆସିଲୁ ।
ତୁ କିଏ ?
ତୁ କୃଷ୍ଣ !
ନାଁ -
କାରଣ କେହି ନିଦ୍ରାରେ
ଅଭିଭୂତ ହେଲେ ନାହିଁ
କି
କାରାଗାରରେ ଲୌହ ପ୍ରାଚୀର
ଶୃଙ୍ଖଳମୁକ୍ତ ହେଲାନାହିଁ ।
ତୁ ବୁଦ୍ଧ !
ନାଁ -
କାରଣ ବୃକ୍ଷସବୁ
ପଲ୍ଲବିତ ହେଲେନାହିଁ କି
ଲତାମାନେ ପୁଷ୍ପଭାରରେ
ଅବନତ ହେଲେ ନାହିଁ ।
ତୁ ଯୀଶୁ !

ନାଁ -
କାରଣ ଆକାଶରେ
ଉଜ୍ଜ୍ୱଳ ତାରକାର
ଆବିର୍ଭାବ ହେଲା ନାହିଁ ।
କି
ସ୍ୱର୍ଗଦୂତ ମାନେ ପୁଷ୍ପଗୁଚ୍ଛ ଦେଇ
ସଂଭାଷଣ ଜଣାଇଲେ ନାହିଁ ।
ମୁଁ ତ..
ସୂର୍ଯ୍ୟଙ୍କୁ ଉପାସନା କରିଥିଲି
ସୂର୍ଯ୍ୟାଙ୍କୁ ଉପାସନା କରିଥିଲି
ଶିବଙ୍କୁ ଉପାସନା କରିଥିଲି
ଶିବାଙ୍କୁ ଉପାସନା କରିଥିଲି
ଈଶ୍ୱରଙ୍କୁ ଉପାସନା କରିଥିଲି
ଈଶ୍ୱରୀଙ୍କୁ ଉପାସନା କରିଥିଲି
ହଁ, ଏ କଥା ସତ ଯେ
ନିଜର ଇଚ୍ଛାରେ କି ଅନିଚ୍ଛାରେ
କିଛି ହୁଏ ନାହିଁ,
ମାଟିର ଇଚ୍ଛାରେ କ'ଣ
ଆକାଶରୁ ମେଘ ଆସେ ଧାଇଁ ।
ତଥାପି ଏ ସ୍ୱାର୍ଥପର

ପିତାର କାମନା -
ଧନ ନୁହେଁ ଜନ ନୁହେଁ ଲକ୍ଷ୍ମୀ ନୁହେଁ
ଜ୍ଞାନ ମନ୍ଦାକିନୀ ବଳେ
କରିବାକୁ ପବିତ୍ର ମେଦିନୀ
ପାରିବୁ କି ବସି ତପସ୍ୟାରେ
ଭଗୀରଥ ପରି ।
କିଂବା
ପ୍ରଜ୍ଞାର ମଶାଲ ଜାଳି
ପ୍ରତିପକ୍ଷ ବିଦ୍ରୋହୀଙ୍କୁ ଦେବାପାଇଁ
ସତ୍ୟର ସଂଧାନ
ହଳାହଳ ପାରିବୁକି ପିଇ
ସକ୍ରେଟିସ୍ ପରି ।
କିଂବା
କଠୋର ସାଧନା ବଳେ
ବଶ କରି ନୀଳ ସରସ୍ୱତୀ
ପାରିବୁକି ଧନ୍ୟକରି ଧରଣୀକି
କାବ୍ୟ କଲ୍ଲୋଳରେ
କାଳିଦାସ ପରି ।

****

# ଭୋପାଳର ଦୁଃଖ

(୨/୩ ଡ଼ିସେମ୍ବର ୧୯୮୪ - ଭୋପାଳ ଗ୍ୟାସ ଦୁର୍ଘଟଣା । ସେଦିନ ରାତିରେ ୩୭୦୦ରୁ ଅଧିକ ଲୋକ ମୃତ୍ୟୁ ବରଣ କରିଥିଲେ । ସେଇ ଉଦ୍ଦେଶ୍ୟରେ)

ବନ୍ୟା କି ମରୁଡ଼ି ନୁହେଁ
    ନୁହେଁ ନିଆଁ ଧୂଆଁ ଭୂକଂପନ,
ଅତର୍କିତେ ଗ୍ରାସିଯାଏ
    ଭୂମାୟିତ ଅମୃତ ସନ୍ତାନ ।
ନୁହେଁ ପୁଣି ବିଧାତାର ଖେଳ,
    ମଣିଷର କୃତକର୍ମ  ଡ଼ିସେମ୍ବର କରୁଣ ସକାଳ ।୧।
ଅର୍ଥଲୋଭୀ ମଣିଷର
    ଅମାନୁଷୀ ଅବହେଳା ପାଇଁ,
ମୁହୂର୍ତ୍ତକେ ରୁଦ୍ରମୂର୍ତ୍ତି ମିଥାଇଲ୍
    ବଜାଇଲା ମୃତ୍ୟୁ ସାହାନାଇ ।
ଏବେ ଖାଲି କାନ୍ଦିବାର ପାଲା,
    ତାପରେ ଭାଷଣ ପର୍ବ ସଭା ଏବଂ ଶୋଭଯାତ୍ରା
ବହୁ ବାଦ ପ୍ରତିବାଦ
    କୋର୍ଟ ଆଉ କଚେରୀ ମାମଲା ।୨।
ଭୋପାଳର ଦୁଃଖ କିନ୍ତୁ
    ଖୋଜି ଖୋଜି ପାଏ ନାହିଁ ମୁଠାଏ ସାନ୍ତ୍ୱନା,
ଯେତେସବୁ ବାକ୍ ଚାତୁରୀ
    ଯେତେସବୁ ଆଇନର ଖେଳ
    ସବୁ ଖାଲି ମିଥ୍ୟା ପ୍ରବଞ୍ଚନା ।

ସବୁ କିଛି ଫାଙ୍କା ପ୍ରତିଶ୍ରୁତି,
ଟଙ୍କାର ବହପ କେବେ
ବୁଝିଛି କି ଦରିଦ୍ରର ଆକୁଳ କାକୁତି ।୩।

ସୁଖବାଦ ଦୁଃଖ ବାଦ
ଭାଗ୍ୟବାଦ କର୍ମବାଦ
କିଏ ହେବ ଭୋପାଳର ସାହା ।
ଈଶ୍ୱର ଫିଶ୍ୱର ଯେତେସବୁ କୃପାମୟ କରୁଣା ଭଣ୍ଡାର
ସବୁହେଲେ ମୌନ ନିରୁତ୍ତର
କେହି କହିଲେନି ଆହା ଆହା ।୪।

ଫାଇଲ ହାଟରେ
କିନ୍ତୁ ବାଜୁଥାଏ ଦୁଃଖର ନାଗରା,
ବର୍ଷପରେ ବର୍ଷ ବିତିଯାଏ
ଖୋଲେ ନାହିଁ ପ୍ରୀତିର ପସରା ।୫।
ସାବାସ୍ ଭାରତବର୍ଷ
ସାବାସ୍ ଏ ଗଣତନ୍ତ୍ର ଦେଶ
ତନ୍ତ୍ର ଏଠି ଚଳେ ନାହିଁ
ଚଳେ ଖାଲି ଗଣର କୋରସ୍ ।୬।

****

# ରକ୍ତାକ୍ତ ରବିବାର : ଚୀନ୍

(୪.୬.୮୯ ରବିବାର - ଚୀନ୍‌ର ହଜାର ହଜାର ବିପ୍ଳବୀ ଛାତ୍ରଙ୍କୁ
ସରକାରଙ୍କ କମାଣ ଓ ଗୁଳି ଚଳାଇ ହତ୍ୟା)

(୧)

ଶାସନର ଅହମିକା ଆଗରେ
ତମର ସବୁଜ ସ୍ୱପ୍ନ
ସବୁ ମୂଲ୍ୟହୀନ ।
କମାଣର ଗର୍ଜ୍ଜନ ଆଗରେ
ତମର ନିଷ୍ଫଳ ଦାବୀ
ସବୁ ଅର୍ଥହୀନ ।।

(୨)

ରାବଣ ରାଇଜେ
ରାମ ରାମ ଡ଼ାକ
ସବୁ ଲାଗେ ମିଛ ମିଛ ।
ଲାଲ ସଲାମର
ଦୁର୍ଗରେ ହାୟ
ଗଣତନ୍ତ୍ରର ମୟୂର ନଚାଏ ପୁଚ୍ଛ ।।

(୩)

ଦେଶଭକ୍ତ କମାଣ ବାହିନୀ
ମାଡ଼ିଗଲେ ଆଗକୁ ଆଗକୁ ।
ନିମିଷକେ ହେଲା ଶେଷ
ବିପ୍ଳବର ବିପୁଳ ବାସନା
ରକ୍ତଭିଜା ତିଆନ୍‌ମେନ ବୁକୁ ।।

****



କବି ଓ ସମାଲୋଚକ ଡ଼କ୍ଟର ବନମାଳୀ ବାରିକ (୧୯୪୭)ଙ୍କ ଜନ୍ମ ବାଲେଶ୍ୱର ଜିଲ୍ଲାର ବସ୍ତା ନିକଟବର୍ତ୍ତୀ ଇଡ଼ିଦା ଗ୍ରାମରେ । ଫକୀର ମୋହନ କଲେଜରୁ ଅର୍ଥନୀତିରେ ଅନର୍ସ (୧୯୬୮) ବିଶ୍ୱଭାରତୀରୁ ଓଡ଼ିଆରେ ଏମ୍.ଏ. (ପ୍ରଥମ ଶ୍ରେଣୀରେ ପ୍ରଥମ : ୧୯୭୧), ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡ଼ି.(୧୯୮୩) ଉପାଧି ଲାଭ । ୧୯୭୨ ମସିହାରୁ ବିଭିନ୍ନ ସରକାରୀ କଲେଜରେ ଅଧ୍ୟାପନା । ୨୦୦୩ ମସିହାରେ ରାଜଧାନୀ ଜୁନିଅର କଲେଜର ଅଧକ୍ଷ ଥାଇ ସ୍ୱେଚ୍ଛାକୃତ ଅବସର ଗ୍ରହଣ । ଓଡ଼ିଆ ଗବେଷଣା ପରିଷଦ (କଟକ) ଉତ୍କଳ ସାହିତ୍ୟ ସମାଜ (କଟକ) କେଦାରନାଥ ଗବେଷଣା ପରିଷଦ (ଭୁବନେଶ୍ୱର) ଅଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମିଳନୀ ଓ ଭାରତୀୟ ଲୋକସାହିତ୍ୟ କଂଗ୍ରେସର ଆଜୀବନ ସଭ୍ୟ ।

ପ୍ରକାଶିତ ଗ୍ରନ୍ଥ : କସ୍ତୁରୀ ନଦୀର ଗଂଧ (କବିତା) - ୧୯୮୦, ଅନ୍ୟ ଅଂଗୀକାର (କବିତା) -୧୯୮୮, ରାଗର ନାମ ଅନୁରାଗ (କବିତା) - ୧୯୮୮, ଶୃଙ୍ଗାର ତତ୍ତ୍ୱ ଓ ଓଡ଼ିଆ ରୀତିକାବ୍ୟ (ଗବେଷଣା ଗ୍ରନ୍ଥ) - ୧୯୯୨, ଗାନ୍ଧିଜୀ ଓ ଗଣଶିକ୍ଷା (୧୯୯୪), ଗାନ୍ଧିଜୀଙ୍କ ଦୃଷ୍ଟିରେ ପଞ୍ଚାୟତରାଜ- (୧୯୯୬), ଗବେଷଣା ବିଧି ଓ ଅନୁବାଦ କଳା (ସଂପାଦନା) - ୧୯୯୭, ଭଂଜୀୟ କାବ୍ୟ ଚର୍ଚ୍ଚାର ନୂତନ ପରଂପରା (ସଂମାଲୋଚନା) - ୨୦୦୫, ସମୟର ପ୍ରତିଧ୍ୱନି (କବିତା) - ୨୦୦୭ ।